# ସବୁଜିମା ଓ ପାଣି

ରାମେଶ୍ୱର କାମ୍ବୋଜ 'ହିମାଂଶୁ'
ଅନୁବାଦ: ଗୋବିନ୍ଦ ଚନ୍ଦ୍ର ଚାନ୍ଦ
ଚିତ୍ରାଙ୍କନ: ଅରୂପ ଗୁପ୍ତା



**୮ରୁ ୧୦ ବର୍ଷ ବୟସର ପିଲାମାନଙ୍କ ପାଇଁ**

**ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ** ପୁସ୍ତକ ଓ ପଠନ ଅଭିରୁଚିର ବିକାଶ ନିମନ୍ତେ ୧୯୫୭ ମସିହାରେ ଭାରତ ସରକାର(ଉଚ୍ଚଶିକ୍ଷା ବିଭାଗ, ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ)ଙ୍କ ଦ୍ୱାରା ସ୍ଥାପିତ ଏକ ସ୍ୱୟଂଶାସିତ ସଂସ୍ଥା। ଭାରତରେ ପିଲାମାନଙ୍କ ପାଇଁ  ପୁସ୍ତକର ସର୍ବବୃହତ୍ ବହୁଭାଷିକ ପ୍ରକାଶକ ଭାବରେ ଟ୍ରଷ୍ଟ ବିଭିନ୍ନ ବୟସର ପିଲାମାନଙ୍କୁ ସେମାନଙ୍କ ମାତୃଭାଷା ଓ ଇଂରାଜୀରେ ପୁସ୍ତକ ଯୋଗାଇଦେବା ଉଦ୍ଦେଶ୍ୟରେ  ଇଂରାଜୀ ସମେତ ୩୦ରୁ ଅଧିକ ଭାରତୀୟ ଭାଷାରେ ସଚିତ୍ର ଓ ରଙ୍ଗିନ ପୁସ୍ତକ ପ୍ରକାଶ କରିଥାଏ। ଏହିସବୁ ପୁସ୍ତକ ନେହେରୁ ବାଳ ପୁସ୍ତକାଳୟ କ୍ରମରେ ପ୍ରକାଶିତ ହୁଏ।




ISBN 978-81-237-9092-3

ପ୍ରଥମ ସଂସ୍କରଣ 2020 (ଶକାବ୍ଦ 1941)

Original : Hariyali Aur Pani (*Hindi*)
Translation : Sabujima O Pani (*Odia*)
**₹ 35.00**
ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5, ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍- II
ବସନ୍ତକୁଞ୍ଜ, ନୂଆ ଦିଲ୍ଲୀ - 110070 କର୍ତ୍ତୃକ ପ୍ରକାଶିତ
Website : www.nbtindia.gov.in

ନେହେରୁ ବାଳ ପୁସ୍ତକାଳୟ

# ସବୁଜିମା ଓ ପାଣି



ରାମେଶ୍ୱର କାମ୍ବୋଜ 'ହିମାଂଶୁ'

ଅନୁବାଦ

ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ଚିତ୍ରାଙ୍କନ

ଅରୂପ ଗୁପ୍ତା






ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ





ବହୁଦିନ ପୂର୍ବର କଥା– ସବୁଜିମା ଓ ପାଣି ବହୁତ ଆନନ୍ଦରେ ରହୁଥିଲେ । ବର, ଓସ୍ତ, ଆମ୍ବ ଓ ନିମର ଛାଇରେ ଶୋଇ ପାଣିକୁ ବହୁତ ସୁଖ ଲାଗୁଥିଲା । ଏହି ବୃକ୍ଷଗୁଡ଼ିକର ସବୁଜିମା ପାଣି ପିଇ ଅଧିକ ଘଞ୍ଚ ହୋଇଯାଇଥିଲା ।

ଦିନେ ସବୁଜିମା କହିଲା– ''ଭାଇ ପାଣି ! ତୁମେ ବହୁତ ଅଳସୁଆ। ସାରା ଦିନ ଶୋଇ ରହୁଛ। କିଛି ସମୟ ପାଇଁ ବୁଲାବୁଲି କର।''

ପାଣିକୁ ସବୁଜିମାର ଏହି ପରାମର୍ଶ ଭଲ ଲାଗିଲା ନାହିଁ। ସେ ଅସନ୍ତୁଷ୍ଟ ହୋଇ କହିଲା– ''ଯଦି ମୁଁ ଏଠାରୁ ଚାଲିଯିବି, ତେବେ ତୁମେ ନଷ୍ଟ ହୋଇଯିବ।''



ସବୁଜିମା ଚିଡ଼ିଉଠି କହିଲା–''ଯିବାକୁ ଚାହୁଁଚ ତ ଯାଅ। ତୁମକୁ କିଏ ଅଟକାଇଛି ?''

''ମୁଁ ଚାଲି ଯାଉଛି''– ପାଣି କହି କହି ବହି ଚାଲିଲା, ''କିଛି ଦିନ ମଧ୍ୟରେ ପତ୍ର ଶୁଖିଯିବ। ଏହା ପରେ ଗଣ୍ଡି ଓ ଚେର ମଧ୍ୟ। ସେତେବେଳେ ତୁମକୁ ବୁଝାପଡ଼ିବ।''

ପାଣି ରୁଷି ଯାଇ କାହିଁ କେତେ ଦୂରକୁ ଚାଲିଗଲା।





ପାଣି ଏଠାରେ ନଥିବାରୁ ଚାରିପଟେ ଧୂଳି ଉଡ଼ିବାକୁ ଲାଗିଲା। ବର, ଓସ୍ତ, ଆମ୍ବ ଓ ନିମ ଗଛର ପତ୍ର ଝାଉଁଳିବାକୁ ଲାଗିଲେ। କିଛି ଦିନ ଭିତରେ ସବୁ ପତ୍ର ହଳଦିଆ ପଡ଼ିଗଲା।

ବୁଢ଼ା ବରଗଛ ବେମାର ଓ ଦୁର୍ବଳ ସବୁଜିମାକୁ କହିଲା– ‘‘ତୁମେ ପାଣି ସହ ଝଗଡ଼ା କରି ଭଲ କଲ ନାହିଁ। ପାଣି ବିନା ମୋର ମୁଣ୍ଡ ବୁଲାଉଛି।’’

‘‘ଗରମ ହେତୁ ଆମର ବି ଜୀବନ ଆଉଟୁପାଉଟୁ ହୋଇଯାଉଛି’’– ଆମ୍ବ, ନିମ ଓ ଓସ୍ତ କହିଲେ।

‘‘ମୋର ଭୁଲ ହୋଇଯାଇଛି। ମୁଁ ପାଣିକୁ କ୍ଷମା ମାଗିବାକୁ ଚାହୁଁଛି।’’– ସବୁଜିମା ବୃକ୍ଷ ଚାରୋଟିଙ୍କୁ କହିଲା।

‘‘ ହଁ, ଏହା ଠିକ୍ ହେବ।’’– ବୃକ୍ଷ ଚାରୋଟି କହିଲେ।

ସେଠାରେ ସବୁଜିମା ବିନା ପାଣି ବି ଦୁଃଖରେ ରହୁଥିଲା । ଦିନସାରା ଧୂଳି ଉଡୁଥିଲା ଓ ତା' ଆଖିରେ ଭର୍ତ୍ତି ହୋଇଯାଉଥିଲା । ସୂର୍ଯ୍ୟଙ୍କ ଉତ୍ତାପରେ ତା'ର ଶରୀର ଜଳି ଯାଉଥିଲା । ପାଣି ଯେତେବେଳେ ସବୁଜିମାର କଥା ମନେ ପକାଉଥିଲା ସେତେବେଳେ ତା ମନରେ ରାଗ ଆସୁଥିଲା । ସେଠାରେ ହଳଦିଆ ପତ୍ର ଶୁଖି ମାଟି ଉପରେ ଖସି ପଡୁଥିଲା ।







ଦିନେ ପତ୍ର ଖୁବ୍ ଜୋର୍‌ରେ ବହୁଥିବା ପବନ ସହ ଉଡ଼ି ପାଣିକୁ ଖୋଜିବାକୁ ବାହାରି ପଡ଼ିଲା । ଦିନ ସାରା ଉଡ଼ିବା ପରେ ସେ ପାଣିକୁ ଖୋଜି ପାଇଲା ।

ଶୁଖିଲା ପତ୍ରଗୁଡ଼ିକର  ଏପରି ଅବସ୍ଥା ଦେଖି ପାଣିକୁ ବହୁତ ଖରାପ ଲାଗିଲା । ପତ୍ରଗୁଡ଼ିକ ପାଣିକୁ ବୃକ୍ଷମାନଙ୍କର ଦୁର୍ଦ୍ଦଶା ବିଷୟରେ ଗୋଟି ଗୋଟି କରି ସବୁକଥା କହିଲେ । ସବୁ ବୃକ୍ଷ ତୃଷିତ ହେବା କାରଣରୁ ଶୁଖି ଯାଉଥିଲେ ।



ବୃକ୍ଷମାନଙ୍କର ଶୋଷ ମେଣ୍ଟାଇ ସବୁଜିମାକୁ ବଞ୍ଚାଇବାକୁ ପାଣି ଦୃଢ଼ ନିଷ୍ପତ୍ତି ନେଲା । ସୂର୍ଯ୍ୟର ପ୍ରଖର ତେଜରେ ତା'ର ଶରୀର ଜଳି ଯାଉଥିଲା । ଯାଉ ଯାଉ ଅଣନିଃଶ୍ୱାସୀ ହୋଇଯାଉଥିଲା । ଆଗରେ ବହୁ ଦୂର ଯାଏ ଶୁଖିଲା ଜମି ଥିଲା । ପାଣି ଭାବିଲା– ଏହି ଶୁଖିଲା ଜମି ମୋତେ ଶୋଷି ନେବ । ବର, ଓସ୍ତ, ଆମ୍ବ ଓ ନିମ ଯାଏଁ ପହଞ୍ଚିବା କଷ୍ଟକର ହୋଇଯିବ ।

ଗରମ କାରଣରୁ ମାଟି ସ୍ଥାନେ ସ୍ଥାନେ ଫାଟି ଯାଇଥିଲା । ପାଣି ଧୀରେ ଧୀରେ ବହି ଯାଇ ଏହି ଫାଟିଯାଇଥିବା ଜାଗାରେ ଭର୍ତ୍ତି ହୋଇଗଲା । ଏଣିକି ସେ ଅଧିକ ବେଗରେ ଆଗକୁ ବଢ଼ିଲା ।

ପାଣି ମାଟି ତଳେତଳେ ବହିବାକୁ ଲାଗିଲା । ରାସ୍ତାରେ କିଛିକିଛି ପଥର ତା'ର ରାସ୍ତା ଓଗାଳିଲେ । ପାଣି ଚେଷ୍ଟା କରି ପୁଣି ରାସ୍ତା ଖୋଜି ନେଉଥିଲା । ଚାଲିଚାଲି ହାଲିଆ ହୋଇଯାଉଥିବା କାରଣରୁ ସେ ଧଇଁସଇଁ ହୋଇଯାଉଥିଲା । ଆଗକୁ ଯିବା କଷ୍ଟକର ଥିଲା । ସେ କିଛି ପରିଚିତ ବାସ୍ନା ବାରିପାରିଲା । ସେ ଛୁଉଁଥିବା ଶୁଖିଲା ଶୁଖିଲା ଆଙ୍ଗୁଳି ଓଦା ହୋଇଗଲା । ସେ ଖୁସିରେ ଉଛୁଳି ପଡ଼ିଲା– "ଆରେ ! ଇଏ ତ ନିମ !"

ସେ ଦୁଇଗୁଣା ଉତ୍ସାହରେ ଆଗକୁ ଚାଲିଲା । ବହୁ ଦୂର ପର୍ଯ୍ୟନ୍ତ ବ୍ୟାପିଥିବା ବୁଢ଼ା ବରଗଛର ଚେର ଭିଜିଗଲା । ପାଣି କିଛି ସମୟ ଭିତରେ ଗଛ ଚାରୋଟିର ଚେରକୁ ଭିଜେଇ ଦେଲା । ଶୁଖିଲା ଡାଳରେ ଜୀବନ ଭରିଗଲା । କିଛି ଦିନ ଭିତରେ କଅଁଳ ପତ୍ର ବାହାରି ଆସିଲା । ବୃକ୍ଷ ଚାରୋଟି ସବୁଜିମାରେ ଭରିଉଠିଲେ ।

ସବୁଜିମା ପାଣିକୁ କୁଣ୍ଢେଇ ପକାଇଲା– ‘‘ଭାଇ ! ମୋତେ କ୍ଷମା କରି ଦିଅ ! ମୁଁ ତୁମକୁ ଆଦୌ ଖରାପ କରି କହିବି ନାହିଁ ।’’



''ଭୁଲ୍ ମୋର ଥିଲା''– ପାଣି କାନ୍ଦିବାକୁ ଲାଗିଲା । ଟପ୍ ଟପ୍ ଲୁହ ଗଡ଼ିଯାଉଥିଲା–
''ମୁଁ ତୁମକୁ ଛାଡ଼ି ଆଦୌ ଯିବିନାହିଁ ।''

ସେବେଠାରୁ ସବୁଜିମା ଓ ପାଣି ସାଥୀ ହୋଇ ରହିଆସୁଛନ୍ତି ।



**ରାମେଶ୍ୱର କାମ୍ବୋଜ 'ହିମାଂଶୁ'** ତିନି ଦଶକ ଧରି କେନ୍ଦ୍ରୀୟ ବିଦ୍ୟାଳୟରେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ପିଲାମାନଙ୍କ ପାଇଁ କର୍ମଶାଳାର ସଂଚାଳନ ତଥା ପୁସ୍ତକାଳୟକୁ ସମୃଦ୍ଧ କରିବା ଅଭିଯାନରେ ସକ୍ରିୟ ଅଛନ୍ତି। ସେ କେତେକ ଇ-ପତ୍ରିକାର ସଂପାଦକ, ଶତାଧିକ ଲେଖା ସହ ବିଭିନ୍ନ ପାଠ୍ୟପୁସ୍ତକ ରଚନାରେ ସଂପୃକ୍ତ। ପ୍ରକାଶିତ କୃତି ମଧ୍ୟରେ ରହିଛି *ମାଟି, ପାଣି ଔର ହାୱା, ଅଞ୍ଜୁରୀ ଭର ଆସୀସ, କୁକଡ଼ କୂଁ, ହୁଆ ସବେରା, ଧରତୀ କେ ଆସୁଁ, ଦୀପା, ଦୁସରା ସବେରା* ଆଦି।

**ଗୋବିନ୍ଦ ଚନ୍ଦ୍ର ଚାନ୍ଦ** ଓଡ଼ିଆ ଭାଷାରେ ପିଲାମାନଙ୍କ ପାଇଁ ଗପ, କବିତା ଓ ଜୀବନୀ ଲେଖିବା ସହ ଶିଶୁ-ସାହିତ୍ୟ ସମାଲୋଚନା, ଶିଶୁ-କିଶୋର ପତ୍ରିକା ସଂପାଦନା ଏବଂ ଶିଶୁ-ସାହିତ୍ୟ ସଂଗଠନ କାର୍ଯ୍ୟରେ ବ୍ରତୀ। *ଫେରିଯିବି ମୁଁ ଗାଆଁକୁ, ଭୁଲିହେବ ନାହିଁ ସେମାନଙ୍କୁ, ମୋ ଗୀତ ମୋ ମିତ, ଅନାଥ ଶିଶୁର ଅମରଗାଥା, ଓଡ଼ିଆ ଶିଶୁ-କିଶୋର ଢଗଢ଼ମାଳି* ଆଦି ପୁସ୍ତକର ସେ ଲେଖକ।

**ଅରୂପ ଗୁପ୍ତା** ଚିତ୍ରକଳାରେ ସ୍ନାତକ ଡିଗ୍ରୀ ଲାଭ କରିଛନ୍ତି ଏବଂ ଗତ ତିନି ଦଶକ ଧରି ଏନ୍.ବି.ଟି, ଏନ୍.ସି.ଇ.ଆର୍.ଟି, ଅକ୍ସଫୋର୍ଡ ପ୍ରେସ୍ ସମେତ କେତେକ ପ୍ରତିଷ୍ଠିତ ପ୍ରକାଶକଙ୍କ ପାଇଁ ଶିଶୁପୁସ୍ତକରେ ଚିତ୍ରାଙ୍କନ କାର୍ଯ୍ୟ କରୁଛନ୍ତି।




ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



₹ 35.00
ISBN 812379092-9




19201902
Hariyali Aur Pani *(Odia)*